# ବଂଶୀର ସ୍ୱର



ମୀନାକ୍ଷୀ ସ୍ୱାମୀ

ଅନୁବାଦ : ସୁନାମଣି ରାଉତ

ଚିତ୍ରାଙ୍କନ : ଫଜରୁଦ୍ଦୀନ

୮ରୁ ୧୦ ବର୍ଷ ବୟସର ପିଲାମାନଙ୍କ ପାଇଁ

**ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ** ପୁସ୍ତକ ଓ ପଠନ ଅଭିରୁଚିର ବିକାଶ ନିମନ୍ତେ ୧୯୫୭ ମସିହାରେ ଭାରତ ସରକାର(ଉଚ୍ଚଶିକ୍ଷା ବିଭାଗ, ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ)ଙ୍କ ଦ୍ୱାରା ସ୍ଥାପିତ ଏକ ସ୍ୱୟଂଶାସିତ ସଂସ୍ଥା । ଭାରତରେ ପିଲାମାନଙ୍କ ପାଇଁ ପୁସ୍ତକର ସର୍ବବୃହତ୍ ବହୁଭାଷିକ ପ୍ରକାଶକ ଭାବରେ ଟ୍ରଷ୍ଟ ବିଭିନ୍ନ ବୟସର ପିଲାମାନଙ୍କୁ ସେମାନଙ୍କ ମାତୃଭାଷା ଓ ଇଂରାଜୀରେ ପୁସ୍ତକ ଯୋଗାଇଦେବା ଉଦ୍ଦେଶ୍ୟରେ ଇଂରାଜୀ ସମେତ ୩୦ରୁ ଅଧିକ ଭାରତୀୟ ଭାଷାରେ ସଚିତ୍ର ଓ ରଙ୍ଗିନ ପୁସ୍ତକ ପ୍ରକାଶ କରିଥାଏ । ଏହିସବୁ ପୁସ୍ତକ ନେହେରୁ ବାଳ ପୁସ୍ତକାଳୟ କ୍ରମରେ ପ୍ରକାଶିତ ହୁଏ ।

ISBN 978-81-237-9085-5

ପ୍ରଥମ ସଂସ୍କରଣ 2020 (ଶକାବ୍ଦ 1941)

Original : Bansuri Ke Sur (*Hindi*)
Translation : Banshira Swara (*Odia*)

**₹ 40.00**

ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ନେହେରୁ ଭବନ, 5, ଇନ୍ଷ୍ଟିଚ୍ୟୁସନାଲ ଏରିଆ, ଫେଜ୍– II
ବସନ୍ତକୁଞ୍ଜ, ନୂଆ ଦିଲ୍ଲୀ - 110070 କର୍ତ୍ତୃକ ପ୍ରକାଶିତ
Website : www.nbtindia.gov.in



# ବଂଶୀର ସ୍ୱର

**ମୀନାକ୍ଷୀ ସ୍ୱାମୀ**

ଅନୁବାଦ: **ସୁନାମଣି ରାଉତ**

ଚିତ୍ରାଙ୍କନ: **ଫଜରୁଦ୍ଦୀନ**





ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

'ଭୂରା' ନାମରେ ଗୋଟିଏ ଭାଲୁ ଥିଲା। ସେ ଜଙ୍ଗଲରେ ତ ରହୁଥିଲା, କିନ୍ତୁ ତାକୁ ଜଙ୍ଗଲ ବାହାରେ ଥିବା ନଦୀ କୂଳରେ ବସିବାକୁ ଭଲ ଲାଗୁଥିଲା। ସନ୍ଧ୍ୟା ସମୟରେ ଯେତେବେଳେ ଅନ୍ୟ ଜୀବଜନ୍ତୁ ସବୁ ଖେଳକୁଦ କରୁଥିଲେ, ଗପସପ କରୁଥିଲେ, ସେତେବେଳେ ଭୂରା ଯାଇ ନଦୀକୂଳରେ ଥିବା ଏକ ଚଟାଣ ଉପରେ ବସି ପଡୁଥିଲା।



ଗୋଟିଏ ସନ୍ଧ୍ୟା ସମୟର କଥା । ଭୂରା ନଦୀକୂଳ ଆଡ଼କୁ ଆସୁଥିଲା । ସେତେବେଳେ ତା କାନକୁ ଗୋଟିଏ ମଧୁର ସ୍ୱର ଶୁଣାଗଲା । ‘‘ଆରେ ଏ ସ୍ୱର କେତେ ମିଠା !! କୋଉଠୁ ଆସୁଛି ଏ ସ୍ୱର !! ବୋଧହୁଏ ସେଇ ଚଟାଣ ଆଡୁ ଆସୁଛି । ଯାଉଛି ଦେଖିବି ।’’





ଭୂରା ଚଟାଣ ପାଖରେ ଯାଇ ପହଞ୍ଚିଲା । ସେଠାରେ ଜଣେ ବାଳକ ବସିଥିଲା । ମଧୁର ସ୍ୱର ସେହି ବାଳକ ପାଖରୁ ହିଁ ଆସୁଥିଲା ।

ଭୂରା ଆଉ ସମ୍ଭାଳି ପାରିଲାନି । ସେ ଧୀରେ ଧୀରେ ତା ପାଖକୁ ଗଲା ଆଉ ଚୁପ୍ କରି ତା ପଛପଟେ ଯାଇ ଛିଡ଼ା ହେଇଗଲା । ବାଳକଟିକୁ କିଛି ଜଣା ପଡ଼ିଲା ନାହିଁ । ସେ ବଂଶୀ ବଜାଇ ଚାଲିଥାଏ ଆଉ ଭୂରା ତାକୁ ଶୁଣିବାରେ ଲାଗିଥାଏ । ଏମିତି ଅନେକ ସମୟ ଚାଲିଗଲା । ଯେତେବେଳେ ବାଳକଟି ବଂଶୀ ବଜାଇବା ବନ୍ଦ କଲା, ସେତେବେଳେ ତାକୁ ଲାଗିଲା ଯେ, ତା ପଛରେ କେହି ଜଣେ ଛିଡ଼ା ହୋଇଛି । ସେ ପଛକୁ ବୁଲି ଦେଖିଲା ।

ପଛରେ ଭାଲୁଟେ ଠିଆ ହୋଇଥିବା ଦେଖି ସେ ଡରରେ ଚିତ୍କାର କରିଉଠିଲା। ଭାଲୁଟି ହସିଲା ଏବଂ କହିଲା, ‘‘ଡର ନାହିଁ, ମତେ ତମ ସାଙ୍ଗ ବୋଲି ଭାବ।’’ ଭାଲୁଟି ମଣିଷଙ୍କ ଭଳି କଥା କହୁଥିବାର ଦେଖି ବାଳକଟି ଆଶ୍ଚର୍ଯ୍ୟ ହୋଇଗଲା। ସେ ଡରିଡରି କହିଲା, ‘‘କିନ୍ତୁ ତମେ ତ... ।’’ ଭୂରା କହିଲା, ‘‘ସେ ସବୁ ଛାଡ଼, ଆଉ ଏଇ କଥା କୁହ ଯେ ତମେ ମତେ ପସନ୍ଦ କରୁଛ ନା ନାହିଁ।’’ ବାଳକର ଡର ଏବେ ଟିକେ କମିଗଲା। ସେ କହିଲା, ‘‘ହଁ...’’।



ଭୂରା କହିଲା, ‘‘ଆଉ ପୁଣି କ’ଣ ? ଏବେ ସାଙ୍ଗ ତ ! ସାଙ୍ଗ ହେବା ପାଇଁ ଏତିକି କ’ଣ ଯଥେଷ୍ଟ ନୁହେଁ?’’ ବାଳକଟି ହସିଲା ଆଉ କହିଲା, ‘‘ହଁ ’’।

ଭାଲୁଟି ନିଜର ପରିଚୟ ଦେଲା, ‘‘ମୋ ନାଁ ହେଉଛି ଭୂରା, ଆଉ ତମ ନାଁ କ’ଣ ?’’ ବାଳକଟି କହିଲା, ‘‘ମୋ ନାଁ ହେଉଛି ସଂଜୀବ। ମୁଁ ଏହି ପାଖରେ ହିଁ ରହୁଛି। ସନ୍ଧ୍ୟା ସମୟରେ ପ୍ରାୟତଃ ଏଠିକି ଆସିଥାଏ। ମତେ ଏଠିକି ଆସିଲେ ବହୁତ ଭଲ ଲାଗେ।’’ ଭୂରା ଆଗକୁ ହାତ ବଢ଼ାଇଲା ଆଉ କହିଲା, ‘‘ଆମେ ଦି ଜଣ ଆଜିଠାରୁ ସାଙ୍ଗ ହେଲେ। ତମେ ମତେ ଡରିବ ନାହିଁ ତ ?’’ ସଂଜୀବ ତା’ ସହ ହାତ ମିଳେଇ କହିଲା, ‘‘ନା, ନା ମୁଁ ତ ହଠାତ୍ ତମକୁ ଦେଖି ଡରି ଯାଇଥିଲି।’’



ଆମର ଏଠି ଯୋଉ ଚିଡ଼ିଆଖାନା ଅଛି, ସେଠି ବି ଭାଲୁ ଅଛନ୍ତି। ମୁଁ ସେମାନଙ୍କୁ ସେଠାରେ ଦେଖିବାକୁ ଯାଏ। ଆଉ ଯେତେବେଳେ ଭାଲୁନଚାଳି ଭାଲୁର ନାଚ ଦେଖେଇବାକୁ ଆସିଥାଏ, ସେତେବେଳେ ମୁଁ ଆର ସାହିକୁ ବି ଯାଇ ଭାଲୁ ନାଚ ଦେଖିଥାଏ। ଭୂରା ପଚାରିଲା, ‘‘ତମେ ଏମିତି ମିଠା ମିଠା ସ୍ୱର କେମିତି ବାହାର କରୁଛ ଯେ ?’’



ସଂଜୀବ କହିଲା, ‘‘ଏଇଟା ହେଉଛି ବଂଶୀ । ମୁଁ ଏଥିରେ ଗୀତ ବଜେଇ ଥାଏ ।’’ ଭୂରା କହିଲା, ‘‘ଏବେ ମୁଁ ସବୁ ଦିନେ ତମଠାରୁ ବଂଶୀ ଶୁଣିବାକୁ ଆସିବି ।’’ ସଂଜୀବ କହିଲା, ‘‘ହଁ, ହଁ, ନିଶ୍ଚିତ । ତମେ ସବୁଦିନ ଆସିଲେ, ମତେ ବି ବହୁତ ଭଲ ଲାଗିବ ।’’ ଯା ପରଠାରୁ ଭୂରା ସବୁ ଦିନେ ସଂଜୀବ ପାଖକୁ ବଂଶୀ ଶୁଣିବାକୁ ଆସିଲା । ସଂଜୀବ ଭୂରାକୁ ବି ବଂଶୀ ବଜେଇବା ଶିଖେଇ ଦେଲା । ଏହିଭଳି ଭାବରେ ଦିନ ଗଡ଼ି ଚାଲିଲା ।



ଦିନେ ସନ୍ଧ୍ୟା ସମୟରେ ଭୂରା ଯେତେବେଳେ ସଂଜୀବ ପାଖକୁ ଆସିଲା, ଦେଖିଲା ଯେ ସଂଜୀବ ମନ ଦୁଃଖ କରି ବସିଛି। ଭୂରା ସଂଜୀବକୁ ପଚାରିବାରୁ ସେ କହିଲା, ‘‘ଆମେ ଅନ୍ୟ ସହରକୁ ଚାଲି ଯାଉଛୁ। ମୁଁ ଆଉ ତମସହ ଦେଖା କରିପାରିବି ନାହିଁ ସାଙ୍ଗ।’’
‘‘କ’ଣ ? ? ? ? ?’’ ଏହି କଥା ଶୁଣି ଭୂରା ବହୁତ ମନ ଦୁଃଖ କଲା। ସଂଜୀବ ଆଖିରେ ବି ଲୁହ ଆସିଗଲା। ସେ କହିଲା, ‘‘ ହଁ ଭୂରା, ଏବେ ତ ମତେ ଏହି ନଦୀ, ଗଛ ସବୁ ଛାଡ଼ି ଯିବାକୁ ପଡ଼ିବ। କାଲି ଆମେ ଏହି ଜାଗାରୁ ଚାଲିଯିବୁ।’’ ଦି’ ଜଣ ଯାକ ଏହି କଥାରେ ବହୁତ କାନ୍ଦିଲେ। ଯିବା ସମୟରେ ସଂଜୀବ ଭୂରାକୁ ତା ବଂଶୀ ଦେଲା ଆଉ କହିଲା, ‘‘ ଏଇ ନିଅ ସାଙ୍ଗ, ମତେ ମନେ ପକେଇବା ପାଇଁ, ଏହି ବଂଶୀଟି ରଖିନିଅ।’’ ଭୂରା କହିଲା, ‘‘ତମେ ପୁଣି କ’ଣ କରିବ ?’’ ‘‘ମୁଁ ଆଉ ଗୋଟେ ନେଇ ଆସିବି’’ ସଂଜୀବ କହିଲା। ଦି’ଜଣ ଯାକ ମନଦୁଃଖ କଲେ। ମନ ଦୁଃଖରେ ଦୁଇଜଣ ପରସ୍ପରଠାରୁ ବିଦାୟ ନେଲେ।



ଯେତେବେଳେ ଭୂରା ବଂଶୀ ନେଇ ଜଙ୍ଗଲରେ ପହଞ୍ଚିଲା, ସେତେବେଳେ ସେ ଦେଖିଲା ଯେ ସମସ୍ତ ଜୀବଜନ୍ତୁ କେଜାଣି କୋଉ କଥା ନେଇ ପରସ୍ପର ସହ ଝଗଡ଼ା କରୁଛନ୍ତି। ସିଂହ ଗର୍ଜନ କରିକରି ସମସ୍ତଙ୍କୁ ଚୁପ୍ କରେଇବା ପାଇଁ ଚେଷ୍ଟା କରୁଛି। କିନ୍ତୁ ଜୀବଜନ୍ତୁଙ୍କ ଝଗଡ଼ା ଶବ୍ଦରେ ସିଂହର ଗର୍ଜନ ବି ଦବି ଯାଉଛି। କେହି ଶାନ୍ତ ହେବାର ନାଁ ବି ଧରୁ ନାହାନ୍ତି। ଭୂରା କିଛି ବୁଝି ପାରୁନଥାଏ। ସେ ଆଶ୍ଚର୍ଯ୍ୟ ହେଉଥିଲା ଯେ, ଏ ସବୁ କ'ଣ ହେଉଛି ? ସବୁବେଳେ ଶାନ୍ତ ଥିବା ଜଙ୍ଗଲରେ ଆଜି ଅଶାନ୍ତି କ'ଣ ପାଇଁ ? ଝଗଡ଼ାର ଶବ୍ଦ ବଢ଼ିବଢ଼ି ଚାଲିଥାଏ।



ଖୁବ୍‌ଶୀଘ୍ର ହିଁ ମାଡ଼ଗୋଳ ଆରମ୍ଭ ହୋଇଗଲା । ଜୀବଜନ୍ତୁମାନେ ପରସ୍ପର ସହ ଲଢ଼େଇ କରିବାରେ ଲାଗିଲେ । ଭୂରା ଦେଖୁଥିଲା । ସେ ବୁଝି ପାରୁନଥିଲା ଯେ କ'ଣ କରିବ ?

ସେତେବେଳେ ତା' ନଜର ନିଜ ହାତରେ ଥିବା ବଂଶୀ ଉପରେ ପଡ଼ିଲା । କେଜାଣି ସେ କ'ଣ ଭାବି ବଂଶୀ ବଜେଇ ମଧୁର ସ୍ୱର ଆରମ୍ଭ କରିଦେଲା ।

ଯେତେବେଳେ ବଂଶୀର ମଧୁର ସ୍ୱର ଲଢ଼େଇ–ଝଗଡ଼ା କରୁଥିବା ଜୀବଜନ୍ତୁଙ୍କ କାନରେ ପଡ଼ିଲା, ସମସ୍ତେ ଝଗଡ଼ା କରିବା ଭୁଲିଗଲେ । ସେମାନେ ପରସ୍ପରଠାରୁ ଅଲଗା ହୋଇ ସେଇ ସ୍ୱର ଶୁଣିବାରେ ଲାଗିଲେ ।



ସେମାନଙ୍କ ଆଖିରୁ ଲୁହ ଝରିବାକୁ ଲାଗିଲା । ଧୀରେଧୀରେ ସେମାନଙ୍କ ହୃଦୟରୁ ଘୃଣାଭାବ ଦୂରେଇ ଯାଇ ପ୍ରେମଭାବ ଜାଗ୍ରତ ହେଲା । ଯେମିତି ସମସ୍ତେ ଅଭିଭୂତ ହୋଇଯାଇଛନ୍ତି !! ଜଙ୍ଗଲର ସେ ଦୃଶ୍ୟ ଅପୂର୍ବ ଥିଲା । ଭୂରା ସବୁ କିଛି ଭୁଲି ମଗ୍ନ ହୋଇ ବଂଶୀ ବଜେଇବାରେ ଲାଗିଥାଏ ।



ସମସ୍ତ ଜୀବଜନ୍ତୁ ସବୁ କିଛି ଭୁଲି ଆଖି ବୁଜି ବଂଶୀର ମଧୁର ସ୍ୱର ଶୁଣିବାରେ ମଗ୍ନ ଥିଲେ। ପବନ ବି ଯେମିତି ବଂଶୀର ସ୍ୱର ଶୁଣି ଧୀରେଧୀରେ ବହିବାରେ ଲାଗିଥିଲା। ଗଛଲତା ବି ଯେମିତି ବଂଶୀର ସ୍ୱର ଶୁଣି ଧୀରେ ଧୀରେ ଝୁମିବାରେ ଲାଗିଗଲେ।

ଏମିତି କେତେ ଯେ ସମୟ ବିତିଗଲା, କାହାରିକି ଜଣା ପଡ଼ିଲା ନାହିଁ।



ଯେତେବେଳେ ଭୂରା ବଂଶୀ ବଜେଇବା ବନ୍ଦ କଲା, ସେତେବେଳେ ସମସ୍ତେ ଆଖି଼ ଖୋଲିଲେ । ସିଂହ ସମ୍ମୋହନରୁ ଉଠି କହିଲା, ''ଭୂରା, ଇଏ କି ଚମତ୍କାର ?'' ''ଚମତ୍କାର ମୋର ନୁହେଁ, ଏହି ବଂଶୀର ଥିଲା ।'' ଭୂରା ସମସ୍ତଙ୍କୁ ବଂଶୀ ଦେଖେଇ କହିଲା । ''ଏଇଟା କ'ଣ ଯେ ?'' ସବୁ ଜୀବଜନ୍ତୁ ଏକସଙ୍ଗରେ ପଚାରିଲେ । ଭୂରା କହିଲା, ''ଏଇଟା ହେଉଛି ବଂଶୀ । ମତେ ମୋର ସାଙ୍ଗ ସଂଜୀବ ଦେଇଛି ।'' ''କିନ୍ତୁ ଏଇଟା ବାଜିବା ମାତ୍ରେ ଲଢ଼େଇ–ଝଗଡ଼ା ବନ୍ଦ ହୋଇଗଲା କେମିତି ? ପରିବେଶ ଏତେ ଶାନ୍ତ ହୋଇଗଲା କେମିତି ?'' ସିଂହ ପଚାରିଲା ।
ସେ ବଂଶୀର ଚମତ୍କାରରେ ଖୁବ୍ ଆଶ୍ଚର୍ଯ୍ୟ ହୋଇଯାଇଥିଲା ।



‘‘ଏଇଟା ତ’ ମୁଁ ବି ଜାଣିନି, ହୁଏତ ଏହି ବଂଶୀ ଜାଣି ଥାଇପାରେ।’’ ଭୂରା କହିଲା ଆଉ ଏହି କଥା ସେ ବଂଶୀକୁ ପଚାରିଲା। ବଂଶୀଟି କହିଲା, ‘‘ମୁଁ ତ କିଛି ବି କରିନି। ପ୍ରେମ ତ ତୁମ ଭିତରେ ଆଗରୁ ହିଁ ଥିଲା। କିନ୍ତୁ ତାହା ତମ ସହନଶୀଳତାର ଅଭାବରୁ ଲୁଚି ଯାଇଥିଲା। ମୋର ସ୍ୱର ଶୁଣି ଖାଲି ଏହା ଯାହା ଚେଇଁ ଉଠିଛି।’’ ସିଂହ ପଚାରିଲା, ‘‘କିନ୍ତୁ ଏମିତି କେମିତି ହେଲା ଯେ? ଏତେ ମିଠାସ୍ୱର ତମ ହୃଦୟରୁ କେମିତି ବାହାରି ପାରିଲା?’ ବଂଶୀ କହିଲା, ‘‘ପ୍ରଥମେ ବାଉଁଶକୁ ହଣା ଗଲା, ତା’ ପରେ ତାକୁ ଖଣ୍ଡ ଖଣ୍ଡ କରାଗଲା, ମୁଁ ମୋର ନିଜ ପରିବାରରୁ ଅଲଗାହୋଇ ପୂରା ଏକା ହୋଇଗଲି। ମୋ ଦେହରେ କଣା କରାଗଲା।



ଏତେ ସବୁ ସହିବା ପରେ, ମତେ ତିଆରି କରିଥିବା ବ୍ୟକ୍ତି ମୋ’ ଦେହରେ ପ୍ରାଣସଞ୍ଚାର କଲେ। ସମସ୍ତଙ୍କ ସହଯୋଗ ଏବଂ ସଦ୍ଭାବ ଯୋଗୁଁ ଏହା ସମ୍ଭବ ହୋଇପାରିଲା। ଏହି ଚମତ୍କାର ଖାଲି ମୋର ନୁହେଁ, ଭ୍ରମରର ବି, ଯିଏକି ଏତେ ପ୍ରେମ ଭାବନାରେ ମତେ ବଜେଇ ପାରିଲା।’’ ଭାଲୁ କହିଲା, ‘‘ନା, ନା, ଏହା ତ ଖାଲି ତମର ଉଦାରତା, ତମର ସହନଶୀଳତା, ଯାହାକି ପ୍ରେମ ଭାବରେ ଲଢ଼େଇକୁ ଭୁଲେଇ ଦେଲା।



**ଡକ୍ଟର ମୀନାକ୍ଷୀ ସ୍ୱାମୀ** ମଧ୍ୟପ୍ରଦେଶର ଉଚ୍ଚଶିକ୍ଷା ବିଭାଗରେ ସମାଜଶାସ୍ତ୍ରର ପ୍ରାଧ୍ୟାପିକା ଭାବେ କାର୍ଯ୍ୟରତ । 'ଭୂଭଲ', 'ନତୋହମ', 'ଆଚ୍ଛା ହୁଆ ମୁଝେ ଶକିଲ ସେ ପ୍ୟାର ନହିଁ ହୁଆ', 'ଧରତୀ କି ଡିବିୟା', 'ସୌ କୋସ ମୂମଲ', 'କଟଘରେ ମେଁ ପୀଡ଼ିତ', 'ଅସ୍ମିତା କୀ ଅଗ୍ନିପରୀକ୍ଷା' ଇତ୍ୟାଦି ତାଙ୍କର ଚର୍ଚ୍ଚିତ ପୁସ୍ତକ । ପିଲାମାନଙ୍କ ପାଇଁ ଅନେକ ପୁସ୍ତକ ରଚନା କରିଛନ୍ତି । ଏନ୍.ବି.ଟି. ଦ୍ୱାରା ପ୍ରକାଶିତ ତାଙ୍କ ପୁସ୍ତକ 'କୁଁଏ' ଅନେକ ଭାରତୀୟ ଭାଷାରେ ପ୍ରକାଶିତ ହୋଇଛି ।

**ଡକ୍ଟର ସୁନାମଣି ରାଉତ** ଓଡ଼ିଆ ଶିଶୁ-ସାହିତ୍ୟ କ୍ଷେତ୍ରରେ ପରିଚିତ ସ୍ୱର । 'କକମୀନା', 'କୁନିମୁନି', 'ଫୁଲଚୁଇଁର ଗୀତ', 'ହେବୁ ଜଗତଜିତା', 'କିଚିରି ମିଚିରି ଚିଁ', 'ଏକତା ହିଁ ବଳ', 'ଗଛ ଆମରି ସାଙ୍ଗ', 'ଖେଳକୁ ନାହିଁ ବେଳ','ଆମେ ପିଲାଏ ଭଉଣୀଭାଇ' ଇତ୍ୟାଦି ଅନେକ ଶିଶୁ-କିଶୋର ଗଳ୍ପ ଓ କବିତା ପୁସ୍ତକର ସେ ଲେଖକ । ଓଡ଼ିଆ ଭାଷା-ସାହିତ୍ୟର ପ୍ରାଧ୍ୟାପକ ଭାବେ କାର୍ଯ୍ୟ କରି ସେ ଅବସର ଗ୍ରହଣ କରିଛନ୍ତି ।

**ଫଜରୁଦ୍ଦୀନ** ପିଲାମାନଙ୍କ ପୁସ୍ତକର ଚର୍ଚ୍ଚିତ ଚିତ୍ରକାର । ନ୍ୟାସନାଲ ବୁକ୍ ଟ୍ରଷ୍ଟ ଏବଂ ଅନ୍ୟ ପ୍ରକାଶନ ସଂସ୍ଥାଗୁଡ଼ିକ ପାଇଁ ମଧ୍ୟ ସେ ୫୦ରୁ ଅଧିକ ପୁସ୍ତକର ଚିତ୍ରାଙ୍କନ କରିସାରିଛନ୍ତି ।




Printed at: Royal Offset Printers, New Delhi

